ସଂକ୍ଷିପ୍ତ ଛନ୍ଦଃଶିକ୍ଷା - ତତ୍କାଳଭିତ୍ତିକ



# ତତ୍କାଳ ଛନ୍ଦଃଶିକ୍ଷା



ଲଲାଟେନ୍ଦୁ କବି

# ଡକ୍ରାଳ ଛନ୍ଦଃଶିକ୍ଷା

ଛନ୍ଦ କଣ? ଏହି ଶବ୍ଦ ସଂସ୍କୃତର କ୍ଳୀବ ବା ନପୁଂସକ ଲିଙ୍ଗବାଚକ **ଛନ୍ଦସ୍** ଶବ୍ଦରୁ ଉଦ୍ଭୂତ । ଛନ୍ଦସ୍ ଶବ୍ଦର ପ୍ରଥମା ବିଭକ୍ତି ରୂପ ଯଥାକ୍ରମେ ଛନ୍ଦଃ ଛନ୍ଦସୀ ଛନ୍ଦାଂସି ।

ଛନ୍ଦ ଶବ୍ଦ ବେଦରୁ ଆନୀତ । ପ୍ରଯୁକ୍ତ ବର୍ଣ୍ଣର ସଙ୍ଖ୍ୟା କ୍ରମ ମାତ୍ରାର ଗଣନ ଓ ଯତି ଗତି ସହ ସମ୍ବଦ୍ଧ ବିଶେଷ ନିୟମାବଳୀରେ ନିୟୋଜିତ ପଦ୍ୟର ନାମ **ଛନ୍ଦ** । ଏ ସବୁ ଶୃଙ୍ଖଳା ନ ଥିଲେ ଗୀତ ହେଇ ପାରେ ଛନ୍ଦ ହୁଏ ନାହିଁ । ଏହି ବିଧାନସମୂହର ନିର୍ଦ୍ଦେଶକ ଗ୍ରନ୍ଥର ନାମ **ଛନ୍ଦଃଶାସ୍ତ୍ର** । **ପିଙ୍ଗଳ ମୁନି** ଏହାର ପ୍ରଣେତା । ତେଣୁ ଏହାର ଅନ୍ୟ ନାମ **ପିଙ୍ଗଳ ଶାସ୍ତ୍ର** ।

ବେଦସ୍ଥ ଛନ୍ଦରେ କେବଳ ଅକ୍ଷର ସଙ୍ଖ୍ୟାର ଶୃଙ୍ଖଳା ଥାଏ ବର୍ଣ୍ଣ (ଲଘୁ ଓ ଗୁରୁ ବର୍ଣ୍ଣ)ର ଶୃଙ୍ଖଳା କି ମାତ୍ରାର ଆକଳନଶୃଙ୍ଖଳା ନ ଥାଏ । କିନ୍ତୁ ବେଦ ଈଶ୍ୱରକୃତ ତେଣୁ ଅପୌରୁଷେୟ । ବେଦର ଛନ୍ଦ ମଧ **ଅପୌରୁଷେୟ** । କବିଗଣ **ବୈଦିକଚ୍ଛନ୍ଦ** ଲେଖନ୍ତି ନାହିଁ ।

କବିମାନେ ଓ ସାଧାରଣ ଲୋକେ ଲଘୁଗୁରୁ ବର୍ଣ୍ଣର ଓ ମାତ୍ରାଗତ ଶୃଙ୍ଖଳାରେ ଶୃଙ୍ଖଳିତ **ଲୌକିକ ଛନ୍ଦ** ଲିଖନର ଅଧିକାରୀ । ଜ୍ଞାତବ୍ୟ ଯେ ଉଚ୍ଚାରିତ ହେବାକୁ ଯେଉଁ ବର୍ଣ୍ଣ ସ୍ୱଳ୍ପ (ଏକମାତ୍ରା) ସମୟ ନିଏ ତାହା **ଏକମାତ୍ରିକ** ବା **ଲଘୁ** ବର୍ଣ୍ଣ ଓ ଯାହା ଅଧିକ (ଦୁଇ ମାତ୍ରା) ସମୟ ନିଏ ତାହା **ଦ୍ୱିମାତ୍ରିକ** ବା **ଗୁରୁ** ବର୍ଣ୍ଣ । ଛନ୍ଦଃଶାସ୍ତ୍ରରେ ମାତ୍ରା ଅର୍ଥ **ଉଚ୍ଚାରଣକାଳ** ।

ପ୍ରାଚୀନ ଭାରତରେ ଓ ଆଜି ବି **ସଂସ୍କୃତର** ସମସ୍ତ ପଦ୍ୟ ଓ ଅନ୍ୟାନ୍ୟ ଭାଷାର ଅନେକ ପଦ୍ୟ ଛନ୍ଦୋବଦ୍ଧ କରି ଲେଖା ହେଉଛି ।

ଇହଲୋକର ମନୁଷ୍ୟ ବା କବିଗଣ ଲେଖିବାକୁ ଅଧିକୃତ ଏହି ଛନ୍ଦ ସମୂହ ବା ଲୌକିକ ଛନ୍ଦ ଦୁଇ ପ୍ରକାର ଯଥା **ବାର୍ଣ୍ଣିକ ଛନ୍ଦ** ଓ **ମାତ୍ରିକ ଛନ୍ଦ ବା ମାତ୍ରାଚ୍ଛନ୍ଦ** ।

**ବାର୍ଣ୍ଣିକ ଛନ୍ଦରେ** ପାଦର କେଉଁ ବର୍ଣ୍ଣ ଲଘୁ ଓ କେଉଁ ବର୍ଣ୍ଣ ଗୁରୁ ହେବ ସେ ନିୟମ ମାନିବାକୁ ପଡେ । ଗୋଟିଏ ବି ବର୍ଣ୍ଣରେ ବ୍ୟତିକ୍ରମ କଲେ **ଛନ୍ଦୋଭଙ୍ଗ** ଦୋଷ ଲାଗେ । ଏହି ବର୍ଣ୍ଣଗୁଡିକୁ ଗୋଟିକି ଗୋଟି ଲଘୁ କିଏ ଗୁରୁ କିଏ ଲେଖି ରଖି ହେବ । ଲେଖିବାକୁ ସାମାନ୍ୟତଃ ପ୍ରତୀକ ବା ଚିହ୍ନର ପ୍ରୟୋଗ ହୁଏ । ପ୍ରାଚୀନ ଶାସ୍ତ୍ରରେ ଲଘୁ ବର୍ଣ୍ଣ ପାଇଁ ଇଂରାଜୀ ଆଇ (i) ପରି ଓ ଗୁରୁ ବର୍ଣ୍ଣ ପାଇଁ ଇଂରାଜୀ ଏସ୍ (s) ପରି ଚିହ୍ନ ଲେଖା ଯାଉ ଥିଲା । **ଯଥା ପ୍ରମାଣିକା** isi sis is - ଅର୍ଥାତ୍ ପ୍ରମାଣିକା ଛନ୍ଦର ପ୍ରତି ପାଦରେ ଆଠ ବର୍ଣ୍ଣର କ୍ରମ ହେଲା ଲଘୁ-ଗୁରୁ-ଲଘୁ ଗୁରୁ-ଲଘୁ-ଗୁରୁ ଏବଂ ଲଘୁ-ଗୁରୁ । ବର୍ଣ୍ଣକ୍ରମକୁ ଅନ୍ୟଥା ଗଣକ୍ରମ ଆକାରରେ ବି ଲେଖା ଯାଏ ବୋଲି ବାର୍ଣ୍ଣିକଚ୍ଛନ୍ଦର ଅନ୍ୟ ନାମ **ଗଣଚ୍ଛନ୍ଦ** ।

**ମାତ୍ରିକ ଛନ୍ଦରେ** ପାଦର ଅକ୍ଷର ସଙ୍ଖ୍ୟା ନିର୍ଦ୍ଦିଷ୍ଟ ନ ଥାଏ କିନ୍ତୁ ଲଘୁଗୁରୁ ବର୍ଣ୍ଣର ଅତ୍ୟଳ୍ପ ନିୟମ ସହ ମାତ୍ରା ଗଣନାର ନିୟମ ଅଛି । **ଯଥା ଗଙ୍ଗ** - ୯ ମାତ୍ରା ଅନ୍ତ ss ଅର୍ଥାତ୍ ଗଙ୍ଗ ଛନ୍ଦର ପାଦରେ ମୋଟ ୯ ମାତ୍ରା ରହିବ ଓ ସେଥିରୁ ପ୍ରଥମ ୫ ମାତ୍ରା କବି ସ୍ୱଇଚ୍ଛାରେ ଲେଖିଲା ପରେ ଶେଷ ୪ ମାତ୍ରା ନିମିତ୍ତ କେବଳ ଦୁଇଟି ଗୁରୁ ବର୍ଣ୍ଣ ଲେଖିବେ ।

**ଗଣ** କଣ ? ଗଣ ହେଲା ୩ ବର୍ଣ୍ଣର ସମଷ୍ଟିର ନାମ । ଏଗୁଡିକ ବର୍ଣ୍ଣକ୍ରମକୁ ନେଇ ନାମିତ । ଯଥା ନଗଣ- **III** ସଗଣ- **IIS** ଜଗଣ- **ISI** ଯଗଣ- **ISS** ଭଗଣ- **SII** ରଗଣ- **SIS** ତଗଣ- **SSI** ଓ ମଗଣ- **SSS** I **ଗଣସଙ୍ଖ୍ୟା** ମୋଟ ଏହି ୮ ।

ଏସବୁ ଗଣନାମ ନାମ କିପରି ମନେ ରହିବ? ମନେ ରଖିବାର ଶାସ୍ତ୍ରୀୟ ଉପାୟ **ଯମାତାରା ଜଭାନସ ଲଗା** । ଯେଉଁ ଗଣର ଲକ୍ଷଣ ଜାଣିବେ ସେହି ଅକ୍ଷର ଓ ତା ପର ଦୁଇଟି ପଢିଲେ ଜାଣି ହେବ । ଯଥା ଯଗଣ ପାଇଁ ଯମାତାରେ ଅଛି ଯ ଲଘୁ ମା ଗୁରୁ ଓ ତା ଗୁରୁ । ତେଣୁ ଯଗଣ **ISS** । ହେହି ପରି ତଗଣ ପାଇଁ ତାରାଜ **SSI** ଓ ନଗଣ ପାଇଁ ନସଲ କହେ ନଗଣ iii ଇତ୍ୟାଦି । ଏଥିରେ **ଲ** ଅକ୍ଷର ଲଘୁ ଓ **ଗ** ଅକ୍ଷର ଗୁରୁ ବର୍ଣ୍ଣର ପ୍ରତୀକ ।

ଗଣନାମ ସାହାଯ୍ୟରେ ମଧ୍ୟ **ବାର୍ଣ୍ଣିକ ଛନ୍ଦର ଲକ୍ଷଣ ଲେଖା** ହୁଏ । **ଯଥା:- ପ୍ରମାଣିକା** ଜରୌ ଲଗୌ ଅର୍ଥାତ୍ ପ୍ରମାଣିକା ଛନ୍ଦର ପାଦରେ ରହେ ଜର (ଜଗଣ ଓ ରଗଣ - ଦ୍ୱିବଚନେ ଜରୌ) ଓ ତା ପରେ ଲଘୁ ଓ ଗୁରୁ - ଏପରି ୮ ବର୍ଣ୍ଣ ବା isi sis is ।

**ମାତ୍ରିକ ଗଣ** ଭିନ୍ନ ପ୍ରକାର । ଏଥିରେ ଟଗଣ- ୬ ମାତ୍ରା ଠଗଣ ୫ ମାତ୍ରା ଡଗଣ ୪ ମାତ୍ରା ଢଗଣ ୩ ମାତ୍ରା ଓ ଣଗଣ ୨ ମାତ୍ରାର ସମଷ୍ଟିକୁ ବୁଝାଏ ।

ଯେଉଁ ଛନ୍ଦରେ ୪ଟି ଯାକ ଚରଣର **ସମସ୍ତ ନିୟମ** ସଂପୂର୍ଣ୍ଣ ଏକା ତାହା **ସମ ଛନ୍ଦ** । ଯେଉଁଥିରେ ପ୍ରଥମ ଓ ତୃତୀୟ ଚରଣ ପାଇଁ ସମସ୍ତ ନିୟମ ଏକା ଓ ଦ୍ୱିତୀୟର **ସମସ୍ତ ନିୟମ** ସହ ଚତୁର୍ଥ ପାଦର ସମସ୍ତ ନିୟମ ଏକା କିନ୍ତୁ ପ୍ରଥମ-ତୃତୀୟ ଚରଣର ନିୟମାବଳୀଠୁ ଦ୍ୱିତୀୟ-ଚତୁର୍ଥ ଚରଣର ନିୟମାବଳୀ ଭିନ୍ନ ତାହା **ଅର୍ଦ୍ଧସମ ଛନ୍ଦ** । ଭାଷାନ୍ତରେ **ଅର୍ଦ୍ଧସମ** ଛନ୍ଦରେ ପଦର ପ୍ରଥମାର୍ଦ୍ଧ ଓ ଦ୍ୱିତୀୟାର୍ଦ୍ଧ ଏକା ପରି କିନ୍ତୁ ପ୍ରଥମ-ତୃତୀୟ ସହ ଦ୍ୱିତୀୟ-ଚତୁର୍ଥ ମିଶେ ନାହିଁ । ଏ ଦୁଇ ପ୍ରକାରରୁ ଭିନ୍ନ ସମସ୍ତ ଛନ୍ଦ **ବିଷମ ଛନ୍ଦ**ରେ ପରିଗଣିତ ।

ଜ୍ଞାତବ୍ୟ ଯେ ଛନ୍ଦରେ ପଦ ମୁଖ୍ୟତଃ **୪ ଚରଣ**ରେ ହେଉ ଥିବାରୁ ଏହାର ଚରଣଗୁଡିକୁ **ପାଦ** ବୋଲି ମଧ୍ୟ କହା ଯାଏ । କାରଣ ହେଲା ପାଦର ଅନ୍ୟାର୍ଥ ଏକ **ଚତୁର୍ଥାଂଶ** । ଏହି ପାଦ ଶବ୍ଦରୁ ଅପଭ୍ରଷ୍ଟ ଶବ୍ଦ ପାଏ ଭାରତର ଆଞ୍ଚଳିକ ଭାଷା ମାନଙ୍କରେ ବହୁ ପ୍ରଚଳିତ ।

ଦୁଇଟି ସଦୃଶ ବାର୍ଣ୍ଣିକ ଛନ୍ଦର ମିଶ୍ରଣରେ ଯେଉଁ ଛନ୍ଦ ହୁଏ ତାହା **ଉପଜାତି** ଶ୍ରେଣୀର । **ଯଥା** ମୋଟ ୪ ପାଦରୁ ଏକ ବା ଏକାଧିକ ଇନ୍ଦ୍ରବଜ୍ରା ଛନ୍ଦର ପାଦ ଓ ଅବଶିଷ୍ଟ ଉପେନ୍ଦ୍ରବଜ୍ରା ଛନ୍ଦର ନିୟମରେ ହେଇ ଥିଲେ ତାହା ଉପଜାତୀୟ ଛନ୍ଦ । ସେହି ପରି ବଂଶସ୍ଥ ଓ ଇନ୍ଦ୍ରବଂଶା ଛନ୍ଦର ମିଶ୍ରଣରେ ଦୋଧକ ସହ ରୋଧକର ମିଶ୍ରଣରେ ଦାରିକା ସହ ଉପଦାରିକା ଛନ୍ଦର ମିଶ୍ରଣରେ ଉପଜାତି ହେଇ ପରେ ।

**ଉପଜାତି କରିବା ଅନୁଶାସନ** ହେଲା ଯେଉଁ ଯେଉଁ ଛନ୍ଦର କେବଳ ପ୍ରଥମ ଅକ୍ଷରରେ ଲଘୁଗୁରୁ ବର୍ଣ୍ଣଭେଦ ଥିବ ଓ ଅବଶିଷ୍ଟ ସମସ୍ତ ବର୍ଣ୍ଣ ଓ କ୍ରମ ଏକା ଥିବ ସେ ଦୁଇ ଛନ୍ଦକୁ ନେଇ ଉପଜାତି ଗଢା ଯାଇ ପାରେ । ତେଣୁ ଉପଜାତୀୟ ଛନ୍ଦଶ୍ଚୟ କେବଳ ଅର୍ଦ୍ଧସମ ବା ବିଷମ ହେଇ ପାରିବେ ସମ ଛନ୍ଦ କଦାପି ହେଇ ପାରିବେ ନାହିଁ ।

ପରେ ଚର୍ଚ୍ଚା ହେବ - ଏତଭିନ୍ନ କିଛି ଛନ୍ଦ ଅଛି ଯେଉଁଥିରେ **୪ରୁ ଅଧିକ ଚରଣ** ଥାଏ । ଏ ଗୁଡିକର ସଙ୍ଖ୍ୟା ଅଳ୍ପ ଓ ସେତେ ବହୁଳ ଭାବେ ଲେଖା ହୁଏ ନାହିଁ ।

କେଉଁ ସ୍ୱରବର୍ଣ୍ଣଗୁଡିକ **ଗୁରୁବର୍ଣ୍ଣ** ଓ କେଉଁ ସ୍ୱର ବର୍ଣ୍ଣଗୁଡିକ **ଲଘୁବର୍ଣ୍ଣ** ? ଉତ୍ତର:

ସାନୁସ୍ୱାର ବିସର୍ଗାନ୍ତ ଦୀର୍ଘ ସଂଯୁକ୍ତପୂର୍ବକ
ହଳାଗ୍ରେ ଗୁରୁ ପାଦାନ୍ତେ ଲଘୁ ଅନ୍ୟାନ୍ୟ ସର୍ବକ //

*[1] ଅନୁସ୍ୱାରଯୁକ୍ତ [2] ବିସର୍ଗଯୁକ୍ତ [3] ବ୍ୟାକରଣର ଦୀର୍ଘ ସ୍ୱର (ଆ ଈ ଊ ୠ ଏ ଐ ଓ ଔ - ଏହି ୮ଟି) [4] ଯୁକ୍ତାକ୍ଷରର ପୂର୍ବସ୍ଥ [5] ହଳ ଚିହ୍ନର ପୂର୍ବସ୍ଥ ଓ [6] ପାଦର ଶେଷସ୍ଥ ସ୍ୱର ଗୁରୁ ବର୍ଣ୍ଣର ମାନ୍ୟତାପ୍ରାପ୍ତ (ଅର୍ଥାତ୍ ଏଗୁଡିକ ଉଚ୍ଚାରିତ ହେବାକୁ ଦୁଇ ମାତ୍ରା ବା ଦୁଇ ଏକକ ସମୟ ନିଅନ୍ତି ।) ଅନ୍ୟ ସମସ୍ତ ସ୍ୱର ଲଘୁ ବର୍ଣ୍ଣ ଅର୍ଥାତ୍ ଏକମାତ୍ରିକ । ଅଥବା*

ଅନୁସ୍ୱାରୀ ବିସର୍ଗୀ ଓ ହଳନ୍ତୀ ପୁରତଃ ଗୁରୁ ।
ଦୀର୍ଘ ସଂଯୁକ୍ତପୂର୍ବସ୍ଥ ବିକଳ୍ପେ ଚରଣାନ୍ତକ ॥

**ମୂଳ ସଂସ୍କୃତ ସୂତ୍ର:-**

**सानुस्वारश्च दीर्घश्च विसर्गी च गुरुर्भवेत् ।**
**वर्णः संयुक्तपूर्वश्च तथा पादान्तगोऽपि वा ॥**

ସାନୁସ୍ୱାରଶ୍ଚ ଦୀର୍ଘଶ୍ଚ ବିସର୍ଗୀ ଚ ଗୁରୁର୍ଭବେତ୍ ।
ବର୍ଣଃ ସଂଯୁକ୍ତପୂର୍ବଶ୍ଚ ତଥା ପାଦାନ୍ତଗୋଽପି ବା ॥

**ବ୍ୟଞ୍ଜନ** (ଅର୍ଥାତ୍ **ହଳନ୍ତକ**) ବର୍ଣ୍ଣଚୟ ନିଜେ ନିଜେ ଉଚ୍ଚାରିତ ହେଇ ପାରନ୍ତି ନାହିଁ କି ସମୟ ନିଅନ୍ତି ନାହିଁ । ସେଗୁଡିକ ସ୍ୱରବର୍ଣ୍ଣର ସହାୟତାରେ ଓ ତାହାରି ପ୍ରବାହରେ ଉଚ୍ଚାରିତ ହେଇ ଯାନ୍ତି । ତେଣୁ **ବ୍ୟଞ୍ଜନ ବର୍ଣ୍ଣର ମାତ୍ରା ଶୂନ୍ୟ ।**

ଛନ୍ଦଃପାଠ ବେଳେ ଶ୍ୱାସ ପାଇଁ ମଝେ ମଝେ ନେବାକୁ ପଡୁଥିବା ବିରତିର ନାମ **ଯତି ।**

ଯାହାର ଉଚ୍ଚାରଣରେ ଅଧିକ ସମୟ ଦେବାକୁ ବ୍ୟାକରଣର ନିର୍ଦ୍ଦେଶ ଅଛି ଓ ବୋଲିଲା ବେଳେ ଯେଉଁ ଯେଉଁ ବର୍ଣ୍ଣକୁ ଅଧିକ ସମୟ ଦେବାକୁ ମନୁଷ୍ୟର ସ୍ୱରତନ୍ତ୍ରୀ ବାଧ କରେ ଛନ୍ଦଃଶାସ୍ତ୍ର ତାକୁ **ଗୁରୁବର୍ଣ୍ଣର ମାନ୍ୟତା** ଦିଏ ମାତ୍ର କିଛି ଲଦେ ନାହିଁ ।

**ବାର୍ଣ୍ଣିକ ସମଛନ୍ଦଗୁଡିକର** ପାଦରେ ଅକ୍ଷର ସଙ୍ଖ୍ୟାନୁଯାୟୀ **ଶ୍ରେଣୀନାମ** ହେଲା ଉକ୍ତା (ପ୍ରତି ପାଦରେ ଅକ୍ଷର ୧) ଅତ୍ୟୁକ୍ତା (ପାଦେ ଅକ୍ଷର ୨) ମଧ୍ୟା (ଅକ୍ଷର ୩) । ସେହି ପରି ପ୍ରତିଷ୍ଠା-୪ ସୁପ୍ରତିଷ୍ଠା-୫ ଗାୟତ୍ରୀ-୬ ଉଷ୍ଣକ୍-୭ ଅନୁଷ୍ଟୁପ୍/ଅନୁଷ୍ଟୁଭ୍-୮ ବୃହତୀ-୯ ପଙ୍କ୍ତି-୧୦ ତ୍ରିଷ୍ଟୁପ୍-୧୧ ଜଗତୀ-୧୨ ଅତିଜଗତୀ-୧୩ ଶକ୍ୱରୀ-୧୪ ଅତିଶକ୍ୱରୀ-୧୫ ଅଷ୍ଟି-୧୬ ଅତ୍ୟଷ୍ଟି-୧୭ ଧୃତି-୧୮ ବି(ଅତି)ଧୃତି-୧୯ କୃତି-୨୦ ପ୍ରକୃତି-୨୧ ଆକୃତି-୨୨ ବିକୃତି-୨୩ ସଂକୃତି-୨୪ ଅତିକୃତି-୨୫ ଓ ଉତ୍କୃତି ୨୬ ଅକ୍ଷରବିଶିଷ୍ଟ ଛନ୍ଦର ନାମ । ୨୬ରୁ ଅଧିକ ଅକ୍ଷରର ସମସ୍ତ ସମଛନ୍ଦକୁ **ଦଣ୍ଡକ** ଶ୍ରେଣୀରେ ନିଆ ଯାଏ ।

ସେହି ପରି ପ୍ରତିପାଦରେ ମାତ୍ରାସଙ୍ଖ୍ୟାର ଆଧାରରେ ମାତ୍ରିକ **ସମଛନ୍ଦଚୟର ଶ୍ରେଣୀନାମ** ବି ରଖା ଯାଇଛି । ୭ ଓ ତହିଁରୁ ଅଧିକ ମାତ୍ରାର ପାଦବିଶିଷ୍ଟ ମାତ୍ରିକ ଛନ୍ଦଗୁଡିକର ନାମ ହେଲା - ଲୌକିକ-୭ ବାସବ-୮ ଆଙ୍କ-୯ ଦୈଶିକ-୧୦ ରୌଦ୍ର-୧୧ ଆଦିତ୍ୟ-୧୨ ଭାଗବତ-୧୩ ମାନବ-୧୪ ତୈଥିକ-୧୫ ସଂସ୍କାରୀ-୧୬ ମହାସଂସ୍କାରୀ-୧୭ ପୌରାଣିକ-୧୮ ମହାପୌରାଣିକ-୧୯ ମହାଦୈଶିକ-୨୦ ତ୍ରୈଲୋକ-୨୧ ମହାରୌଦ୍ର-୨୨ ରୌଦ୍ରାର୍କ-୨୩ ଅବତାରୀ-୨୪ ମହାବତାରୀ-୨୫ ମହାଭାଗବତ-୨୬ ନାକ୍ଷତ୍ରିକ-୨୭ ଯୌଗିକ-୨୮ ମହାଯୌଗିକ-୨୯ ମହାତୈଥିକ-୩୦ ଅଶ୍ୱାବତାରୀ-୩୧ ଲାକ୍ଷଣିକ-୩୨ ମାତ୍ରା । ୩୨ରୁ ଅଧିକ ମାତ୍ରାର ସମସ୍ତ ମାତ୍ରିକ ସମଛନ୍ଦ **ଦଣ୍ଡକ** । ୭ରୁ ଊଣା ମାତ୍ରାର ଛନ୍ଦ ଲେଖା ଦେଖିବାକୁ ମିଳୁ ନାହିଁ କି ସେଗୁଡିକର ନାମ ଥିଲେ ମିଳୁ ନାହିଁ ।

**ଲଲାଟେନ୍ଦୁ କବି**

| | | |
|---|---|---|
| ଚରିତ୍ରସଙ୍ଖ୍ୟା | **6,485** | **characters** |
| ଶବ୍ଦସଙ୍ଖ୍ୟା | **1,013** | **words** |
| ବାକ୍ୟସଙ୍ଖ୍ୟା | **0,070** | **sentences** |
| ଶାସ୍ତ୍ର | **0,001** | **indoctrination** |